# ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ

# ବକୁଳ ବନର ଗୁରୁ

ଶ୍ରୀ ପରମେଶ୍ୱର ତ୍ରିପାଠୀ



ଓଡ଼ିଶା ଷ୍ଟୁଡେଣ୍ଟ ଷ୍ଟୋର

ବକୁଳ ବନର ଗୁରୁ


ଲେଖକ :
ଶ୍ରୀ ଜମେଶ୍ୱର ତ୍ରିପାଠୀ,
ତ୍ରିପାଠୀ ଭବନ, ଆଠଗଡ଼

ପ୍ରକାଶକ :
ଶ୍ରୀ ଗୋବିନ୍ଦ ଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଥମ ସଂସ୍କରଣ : ୧୯୭୯
ନୂତନ ମୁଦ୍ରଣ : ୧୯୮୭

ମୁଦ୍ରକ :
ଶ୍ରୀ ରାଧାନାଥ କୋ-ଅପରେଟିଭ୍ ପ୍ରେସ୍, କଟକ

ମୂଲ୍ୟ—ଚାରିଟଙ୍କା ମାତ୍ର


# BAKULA BANARA GURU


By JAMESWAR TRIPATHY
Tripathy Bhawan
Po Athagarh, Cuttack

Publisher :

GOBINDACHARAN PATRA
Orissa Book Store
Cuttack-753002

New Edition : 1987

Printer :

Sri Radhanath Co-operative Press
Cuttack-753002

Price—Rs. 4/—

## ଭୁମର ପର ପିଲାଟିଏ,
## ଘର ପାଇଁ କାନ୍ଦେ ସିଏ ॥



ଭୁମର ଭଳି ସେ ପିଲାଟିଏ । ତାଙ୍କ ନିଜଘରେ କିନ୍ତୁ ଏଣ୍ଡୁଡ଼ିଶାଳରେ ତା' ପାଟିରୁ କୁଆଁ କୁଆଁ ଡାକ ଶୁଭି ନ ଥିଲା । ଜନମବେଳେ ମାଆ ବହୁତ ଦୁଃଖ ପାଇଲେ । ସ୍ୱପ୍ନରେ ଦୈବୀବାଣୀ ଅନୁସାରେ ପଡ଼ଶା ଘରେ ଯାଇ ମାଆଙ୍କ ଗର୍ଭରୁ ବାହାରି ଦୁନିଆର ଆଲୋକ ଦେଖିପାରିଲା ସେ । ବଡ଼ ଅଭାଗାଟାଏ । ଜନମଠାରୁ ମରଣ ଯାଏଁ କେବଳ କଷ୍ଟ ଭୋଗିଲା । ସୁଖ କ'ଣ ପଦାର୍ଥ ସିଏ ଜାଣିଲା ନାହିଁ ।

ଜନମ ପରେ ମାଆଠାରୁ କ୍ଷୀରକଳେ ପିଇନାହିଁ । ମାଆଛେଉଣ୍ଡ ହେଲ । ପିଉସୀ ନାନୀ କୋଳରେ ବଢ଼ିଲ ।

ବାପ ଜ୍ୟୋତିଷକୁ ଡାକି ଜାତକ ଦେଖେଇଲେ । ସେ କହିଲେ—ଘର ସଂସାର କରିବା, ଏ ପିଲ କପାଳରେ ନାହିଁ । ବଡ଼ହେଲେ ବାବାଜୀ ହୋଇଯିବ ।

ବାପା ଅବା ଜ୍ୟୋତିଷ କଥାକୁ ମିଛ ମଣିଥାନ୍ତେ—କିନ୍ତୁ ଏଇ ପିଲାଟି ପିଲାବେଳେ ଦେହରେ ଧୂଳି ବୋଳିହୋଇ ନିଜେ କହୁଥିଲ—ବାପା, ମୁଁ ବାବାଜୀ ହେବି । ରଜା ହେବିନାହିଁ କି ମନ୍ତ୍ରୀ ହେବିନାହିଁ । କେବଳ ବାବାଜୀ ହେବି ।

ଦିନକୁ ଦିନ ଯେତେ ବୟସ ବଢ଼ିଲ—ଧର୍ମ ପ୍ରତି ସେତିକି ଆଗ୍ରହ ସୃଷ୍ଟି ହେଲ । ପୂଜାପାଠ, ଭାଗବତସପ୍ତା ସବୁ ଆରମ୍ଭ ହେଲ । ଉଦାସିଆ ପ୍ରକୃତିର ହେଲେ କ'ଣ ହେବ, ପାଠ କିନ୍ତୁ ଭଲ ପଢ଼ୁଥିଲ । ଶ୍ରେଣୀରେ ସମସ୍ତଙ୍କୁ ପାଠରେ ଟପି ଯାଉଥିଲ ।

ପୁଅ ଭଲ ପାଠ ପଢ଼ୁଛି । ବାପା ତ ଓକିଲ ଲୋକ । ଭାରି ଖୁସି । କେବଳ ସେଇ ପୁଅ ମୁହଁକୁ ଚାହିଁ ସେ ଆଉ ବାହାହେଲେ ନାହିଁ । ମନେ ମନେ ଭାବିଲେ; ପାହାହେଉ ପୁଅ ବଡ଼ହେଲେ ତାଙ୍କର ନାମ ରଖିବ ।

ସେତେବେଳେ ସମାଜରେ ବାଲ୍ୟ ବିବାହ ପ୍ରଥା ପ୍ରଚଳିତ ଥିଲ । ସେଥିପାଇଁ ଅଳ୍ପ ବୟସରୁ ତାଙ୍କୁ ବିବାହ କରାଇ ଦେଲେ । ବାହାହେଲାବେଳକୁ ପୁଅର ବୟସ ବାରବର୍ଷ, ଆଉ ବୋହୂ ବୟସ କେତେ ଜାଣ ? ମାତ୍ର ନଅବର୍ଷ । ସତେ କି କଣ୍ଢେଇ ବିଭାଘର ।

ଦେହରେ ପାଉଁଶ ବୋଳିହୋଇ, ହାତରେ ଚିମୁଟା ଧରି ମୁଣ୍ଡରେ ଗୁଡ଼ାଏ ଜଟ ବାନ୍ଧିଲେ ତାକୁ କ'ଣ ବାବାଜୀ କୁହନ୍ତି ? ତାହାନୁହେଁ ମ । ଯାହାର ସଂସାର ପ୍ରତି ଲୋଭ ନ ଥାଏ, ଯିଏ ସଦାବେଳେ ପର ପାଇଁ ଭାବୁଥାଏ, ମୋଟା ଆଣ୍ଠୁଲୁଚା ଲୁଗା ଖଣ୍ଡିଏ ପିନ୍ଧେ, ରୋଗ ବଇରାଗରେ ପଡ଼ିଲେ ନିଜ ଦେହକଥା ନ ଭାବି ପରର ସେବା କରେ, ତାକୁ କହନ୍ତି ପ୍ରକୃତ ବାବାଜୀ ।

ଘର ସଂସାର କଲ ସିନା; କିନ୍ତୁ ତାକୁ ଘରର ଚାରିକାନ୍ଥ ମାୟାରେ ବାନ୍ଧି ପାରିଲ ନାହିଁ । ଦେଶବାସୀଙ୍କ ମମତା ପାଇଁ ସେ ପାଗଳ ହୋଇଉଠିଲା । ସାରା ଓଡ଼ିଶା ତା'ର କର୍ମଭୂଇଁ ହେଲା । ବଢ଼ି, ମରୁଡ଼ି, ହଇଜା, ମହାମାରୀ ଯେତେବେଳେ ତା' ଦେଶରେ ଦେଖାଦେଇଛି, ସେତେବେଳେ ସ୍ୱେଚ୍ଛାସେବକ ରୂପେ ତାକୁ ଲୋକମାନେ ଦେଖିବାକୁ ପାଇଛନ୍ତି ।

ଛୁଆଁ ଅଛୁଆଁ ଭେଦଭାବ ତା' ପାଖରେ ନ ଥାଏ । ହରିଜନ ପିଲା ନାକରେ ସିଙ୍ଘାଣୀ ଦେଖିଲେ ନିଜ ହାତରେ ପୋଛି ଦେଇଛି । ପିଲାଦିନେ ଜଗନ୍ନାଥ ଦାସଙ୍କ ଭାଗବତରୁ ଯାହା ପଢ଼ିଥିଲା ତାକୁ କାମରେ ଲଗାଇଛି । ସେ କହେ ସକଳ ଘଟରେ ନାରାୟଣ ଅଛନ୍ତି । ସମସ୍ତେ ସମାନ । ଅମଣିଷ ହିଁ କେବଳ ଭେଦଭାବ ସୃଷ୍ଟି କରାଏ ।

ଜନମଠାରୁ ବଡ଼ ହେବା ପର୍ଯ୍ୟନ୍ତ ପର ପାଇଁ କାନ୍ଦିଲା । ତା'ର ସେବା, ତା'ର ଉପକାର, ତା'ର ଆପଣାର ଭାବ ପାଇଁ ବାପ ଯାହାକୁ ଡାକୁଥିଲେ ସାଧୁ ଚରଣ—ଶ୍ରେଣୀରେ ଯାହାର ନାମ ଲେଖାହେଲା ଗୋପବନ୍ଧୁ, ତାକୁ ଶେଷରେ ଦେଶବାସୀ ଡାକିଲେ "ଉତ୍କଳମଣି" ।

ସେଇ ପିଲାଟି, ଯାହାର ଏଇଭଳି ସ୍ୱଭାବକୁ ଦେଖିସହି ନ ପାରିବା ଗାଆଁ ଲୋକମାନେ ଥଟ୍ଟା କରି ବେଳେ କହୁଥିଲେ "ଗୋପ ଦେଶଟାକୁ ଟେକି ଧରିବ ପରି ?" ସେହିମାନେ ପରେ ଦେଖିଲେ ତାଙ୍କରି ଗାଆଁ ପୁଅ ଗୋପବନ୍ଧୁ ଦାସ ସାରା ଭାରତରେ ଓଡ଼ିଶାର ଟେକ ରଖିଦେଇଗଲା ।

ଯାହାଙ୍କୁ ଲୋକମାନେ ଉତ୍କଳ ଗାନ୍ଧୀ ବୋଲି କହନ୍ତି, ସେହି ଗୋପବନ୍ଧୁ ଦାସ ଅଠରଶ ସତସ୍ତରୀ ମସିହା ଅକ୍ଟୋବର ମାସ ନଅ ତାରିଖ ଦିନ ପୁରୀ ଜିଲ୍ଲା ସୁଆଣ୍ଡୋ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଦୈତାରି ଦାସ ଓ ମାତାଙ୍କ ନାମ ସ୍ୱର୍ଣ୍ଣମୟୀ ଦେବୀ

———

# ଯାହା କୋହୁଛି ବାଳ କାଳେ
# ତାହା କି ହେବ ପାଚିଲା କାଳେ ?

ଗୋଟିଏ ଅଞ୍ଚଳରୁ ଛଅଜଣ ପିଲା କଟକ ପାଠପଢ଼ି ଆସିଥାନ୍ତି । କଲିଜିଏଟ୍ ସ୍କୁଲ ଛାତ୍ରାବାସରେ ରହୁଥାନ୍ତି । ତଳ ଉପର ଶ୍ରେଣୀରେ ପଢ଼ୁଥିଲେ କ'ଣ ହେବ; କିନ୍ତୁ ଛଅଜଣଙ୍କ ଭିତରେ ପାଣି ଗଳୁ ନ ଥିଲା ।

ନିତି ସଞ୍ଜବେଳେ କାଠଯୋଡ଼ି ନଈକୂଳକୁ ବୁଲି ଯାଆନ୍ତି । ମଜାଗପ ହୁଅନ୍ତି, ପାଠ ଅପେକ୍ଷା ଦେଶ ବିଷୟରେ ବହୁତ କଥା ହୁଅନ୍ତି ।

ସେଦିନ ଶନିବାର ହୋଇଥାଏ । ସ୍କୁଲକୁ ଯିବା ଆଗରୁ ସମସ୍ତେ ଏକାଠି ଖାଇ ବସିଥାନ୍ତି । ଏହି ସମୟରେ ସେମାନଙ୍କ ଭିତରେ ଯିଏ ସାନ, ସେ ଅଧା ଖିଆରୁ ଉଠିଗଲା । ପଚାରିଲାରୁ କହିଲା—ଖାଇବାକୁ ଇଚ୍ଛା ହେଉନାହିଁ ।

ସମସ୍ତେ ସ୍କୁଲକୁ ଗଲେ । ପାଠପଢ଼ା ସରିଲା । ସଞ୍ଜହେଲା । ବୁଲିଯିବା କଥା । ଦୁଇଜଣ ଡକାଡକି ହୋଇ ସାନ ପିଲାଟି ପାଖକୁ ଆସିଲେ । ଦେଖିଲେ ସାନ ପିଲାଟି ଶୋଇଛି ।

ପଚାରିବାରୁ ସେ ପିଲାଟି କହିଲା—ଆଜି ମୋ ଦେହ ଆଦୌ ଭଲ ଲାଗୁ ନାହିଁ । ସକାଳେ ଗୋଟାଏ ପତଳା ଝାଡ଼ା ହୋଇଗଲା । ଦୁର୍ବଳ ଲାଗୁଛି ।

ସେଥିପାଇଁ ମୁଁ ଅଧାପଢ଼ାରୁ ଚାଲି ଆସିଛି । ମୁଁ ଯିବି ନାହିଁ । ଆପଣମାନେ ଯାଆନ୍ତୁ ।

ସମସ୍ତଙ୍କ ଭିତରେ ଯିଏ ବଡ଼—ସେ ଆଶ୍ୱାସନା ଦେଇ କହିଲେ, "ସକାଳେ ଖାଇବାକୁ ତ ଇଚ୍ଛା ହେଉ ନ ଥିଲା । ଏବେ ପେଟଟା ତମ୍ଭା ତାର ଭଲ୍, ସଫା ହୋଇଗଲା । ଆଉକିଛି ହେବ ନାହିଁ । ତମେ ତେବେ ବୁଲିବାକୁ ନ ଆସ ।"



ସେମାନେ ଚାଲିଯିବାପରେ ପିଲାଟି ଡ୍ରଇଂ ଚିତ୍ର ଆଙ୍କିବାରେ ମନଦେଲା; କିନ୍ତୁ ଏ ଭିତରେ ତା'ର ପାଞ୍ଚଥର ଝାଡ଼ା ହୋଇଗଲାଣି । ତାକୁ ସେତେବେଳକୁ ଭୀଷଣ ଦୁର୍ବଳ ଲାଗୁଥାଏ ।

ସେହି ସମୟରେ ଆଉ ଦୁଇଜଣ ଛାତ୍ର ଫେରି ଆସିଲେଣି । ସାନପିଲାଟି ପାଖକୁ ତା'ର ହାଲ ହଇକତ ବୁଝିବାକୁ ଆସିଲେ । ତା'ର ରୂପଦେଖି ଜଣକ ପାଟିରୁ ବାହାରି ପଡ଼ିଲା, "ହଇରେ ! ତୁ ଇମିତି କଳାକାଠ ପରି ଦିଶୁଛୁ କାହିଁକି ?"

ଜଣାପଡ଼ିଲା ପିଲାଟିକୁ ହଇଜା ଧରିଛି । ସଙ୍ଗେ ସଙ୍ଗେ ଛାତ୍ରାବାସରେ ଚହଳ ପଡ଼ିଗଲା । ସମସ୍ତେ ଭୟରେ ଥରି ଉଠିଲେ ।

ଛାତ୍ର ଦୁଇଜଣ ଡାକ୍ତରଙ୍କୁ ଯାଇ ଖବର ଦେଲେ । ନୂଆକରି ଘର ଆଉ ବାପମାଆଙ୍କୁ ଛାଡ଼ି ପିଲାଟି ସେମାନଙ୍କର ଅଞ୍ଚଳକୁ ଆସିଛି । ବିଦେଶରେ ତା'ର ଭଲମନ୍ଦ ଖବର କିଏ ଅଛି ବୁଝିବ ? ଜଣେ ପିଲାଟିର ଗୋଡ଼ ଦୁଇଟି ଧରି ଆଉଁସିବାକୁ ଲାଗିଲେ ଆଉ ଆରଜଣକ କୋଳରେ ମୁଣ୍ଡଟି ଧରି ପିଲାଟିକୁ କେବଳ ଉତ୍ସାହ ଦେଉଥାନ୍ତି ।

ଏହା ଭିତରେ ଆଉ କେତେଥର ଝାଡ଼ା ହୋଇଗଲାଣି । ଦୁଇଜଣ ମିଶି ହାତରେ ସେ ମଇଳାକୁ ସଫା କଲେ । କ୍ରମେ ପିଲାଟିର ଅବସ୍ଥା ଖରାପ ହେଲା । ସ୍ୱର ବସି ଆସିଲା । ଆଖି ଖୋଲାଏ ଖୋଲାଏ ପଶିଗଲା । ତାକୁ ଚାରିଆଡ଼ ଅନ୍ଧାର ଦିଶିଲା । ପିଲାଟି ଅତି କ୍ଷୀଣ କଣ୍ଠରେ କହିଲା —ଗୀତା ପଢ଼ନ୍ତୁ ।

ଏତିକି ଶୁଣି ଯିଏ ସମସ୍ତଙ୍କଠାରୁ ବଡ଼ ତାଙ୍କର ଧୈର୍ଯ୍ୟ ଆଉ ରହିଲା ନାହିଁ । ଶାସନୀ ବ୍ରାହ୍ମଣ ହେତୁ ମରଣ ପୂର୍ବରୁ ଗୀତା ପଢ଼ିବାକଥା ସେ ଜାଣନ୍ତି । ସେ ଭେ—ଭେ କାନ୍ଦି ଉଠିଲେ ।

ପିଲାଟିର ଚେତା ବୁଡ଼ିଗଲା । ଡାକ୍ତର ଆସିଲେ । ଚିକିତ୍ସା ଆରମ୍ଭ କଲେ ।

ରାତି ପାହିଲା । କୁଆ ରାବିଲା ବେଳକୁ ପିଲାଟି ଚେତା ଫେରି ପାଇଲା । ଆଖି ମେଲାଇ ଦେଖିଲା ସେମିତି ରାତିସାରା ଉଜାଗର ରହି ଦୁଇଜଣ ତାକୁ ଜଗି ବସିଛନ୍ତି । ହଇଜା ଭୟରେ ଛାତ୍ରାବାସର କେହି ପିଲା ତା'ର ପାଖ ମାଡ଼ିନାହାନ୍ତି ।

କ୍ରମେ କ୍ରମେ ପିଲାଟି ସୁସ୍ଥ ହୋଇଆସିଲା । ଭଲ ପାଠପଢ଼ିଲା । ବଡ଼ ହେଲାରୁ ପଣ୍ଡିତ ନୀଳକଣ୍ଠ ଦାସ ନାମରେ ପରିଚିତ ହେଲା । ଆଉ ଛାତ୍ର ଦୁଇଜଣ ହେଉଛନ୍ତି, ଆଚାର୍ଯ୍ୟ ହରିହର ଏବଂ ପଣ୍ଡିତ ଗୋପବନ୍ଧୁ ଦାସ । ଏ ଦୁହିଁଙ୍କୁ ପଣ୍ଡିତ ନୀଳକଣ୍ଠ, ହରି ଭାଇନା ଓ ଦାସେ ଅପଣେ ବୋଲି ଡାକୁଥିଲେ ।

## ବଂଶ ପଢ଼େ ଯାଉ

## ଜାତି ବୁଡ଼େ ପାଉ ।

ପନ୍ଦର ଦିନ ହେବ ପୁଅକୁ ଜର । ଜର ସଙ୍ଗେ ସଙ୍ଗେ ଝାଡ଼ା ମଧ୍ୟ ଲାଗି ରହିଛି । କେଉଁ ଛଅଟା କି ନଅଟା ନାହାନ୍ତି । ଦୁଇ ଝିଅ ତଳେ ପୁଅ ବୋଲି ଗୋଟିଏ ।

ବାପ ରୋଜଗାର କରିନାହାଁନ୍ତି । ପାଠ ପଢ଼ୁଛନ୍ତି । ଘରୁ ପୁଅର ଦେହଦୁଃଖ ବିଷୟରେ ଚିଠି ଆସିଲା । ଗାଉଁଲି ଚିକିତ୍ସା ସରିଲାଣି । କୌଣସିଥିରେ କିଛି କମୁନାହିଁ । ଶୀଘ୍ର ଘରକୁ ଆସି ପିଲା ପାଇଁ ଯାହା କରିବାର କଥା ତାହା କର ।

ପରୀକ୍ଷା ମୁଣ୍ଡ ଉପରେ । ଖବର ପାଇ କେଉଁ ବାପ ରହିପାରନ୍ତା ଯେ, ସେ ରହନ୍ତେ । ସେ ଗାଆଁକୁ ଗଲେ । ପିଲାଙ୍କୁ ପୁରୀ ନେଇ ଆସିଲେ ।

ପୁଅର ଚିକିତ୍ସା ଆରମ୍ଭ ହେଲା । ଏହି ସମୟରେ କୁଶଭଦ୍ରା ନଈରେ ନାହିଁ ନ ଥିବା ବଢ଼ି ଆସିଲା । ଗାଆଁ ଗଣ୍ଡାସବୁ ପାଣିରେ ବୁଡ଼ି ରହିଲା । କେତେ ଘର ଭାସିଗଲା । ଗାଈଗୋରୁ ମଲେ । ଲୋକ ଉପାସରେ ଲୋକମାନଙ୍କର ଦୁର୍ଦ୍ଦଶା କହିଲେ ନ ସରେ ।

ଖବର ପାଇଲେ ସେ । ଆଉ କି ଥୟ ଧରି ରହିପାରନ୍ତେ ? ଗଲେ ବଢ଼ି ଅଞ୍ଚଳକୁ । ପୁଅ ରୋଗ ଶେଯରେ । ସ୍ତ୍ରୀଙ୍କର ମନାକୁ ଖାତିର ନାହିଁ । ସେଇ ଗୋଟାଏ କଥା ପରଙ୍କ ଦୁଃଖ ଆଗ ତା'ପରେ ଘରକଥା ।



ବଢ଼ି ଅଞ୍ଚଳକୁ ଗଲେ । ଲୋକମାନଙ୍କ ଭିତରେ ଚୂଡ଼ା ଚାଉଳ ବାଣ୍ଟିଲେ । ରୋଗୀମାନଙ୍କର ସେବା କଲେ । କିଛିଦିନ ପରେ ବଢ଼ି କମିଲା । ଲୋକମାନେ ଆଶ୍ୱସ୍ତ ହେଲେ । ତା'ପରେ ସେ ଘରକୁ ଫେରିଲେ ।

ଘରେ ପହଞ୍ଚି ପାଦ ନ ଦେଉଣୁ ସ୍ତ୍ରୀ କାନ୍ଦି କାନ୍ଦି କହିଲେ—ଆଉ କ'ଣ ଅଛି ଯେ ଏତେ ଦିନପରେ ଦେଖିବାକୁ ଆସିଛ ?

ସେ ବୁଝି ପାରିଲେ ତାଙ୍କର ଏକୋଇରବଳା ବଶିକେସନ ତାଙ୍କୁ ସବୁଦନ ପାଇଁ ଛାଡ଼ ଚ୍ଲ ଯାଇଛୁ ।

ପୁଅ ମରିଯାଇଛୁ; ଅଥଚ ଆଖିରେ ଟୋପାଏ ଲୁହ ନାହିଁ । ସ୍ତ୍ରୀଙ୍କୁ ବୁଝାଇ କହିଲେ—ତୁମେ ସିନା ଗୋଟିଏ ପୁଅକୁ ହରାଇ ଆଜି କାନ୍ଦୁଛ । ମୁଁ କିନ୍ତୁ ଶହେ ପୁଅଙ୍କର ଜୀବନ ବଞ୍ଚାଇ ଫେରି ଆସିଛୁ । ତୁମେ ଏଣିକି ଶହେ ପୁଅର ମାଆ ।

ସ୍ତ୍ରୀ ଏହିଭଳି ସ୍ୱାମୀଙ୍କର ମୁହଁକୁ ବଲ ବଲ କରି ଚାହିଁ ଭାବିଲେ—ଏ ମଣିଷ ନା ପାଗଳ ?

ପ୍ରକୃତରେ ତାଙ୍କ ସ୍ୱାମୀ ଦେଶବାସୀ ପାଇଁ ପାଗଳ ଥିଲେ । ସେ ନିଜ ପାଇଁ ଆଦୌ ଚିନ୍ତା କରୁ ନ ଥିଲେ । ତେଣୁ ସିନା ଲୋକେ ଦୀନବନ୍ଧୁ ଗୋପବନ୍ଧୁ ଦାସ ବୋଲି ତାଙ୍କୁ ଭକ୍ତି କରୁଥିଲେ ।

———

# ଦଗ୍ଧ ହେଉ ଦେହ, ଭସ୍ମ ହେଉ ଘର
# ସ୍ୱରାଜ୍ୟ ସାଧନେ କେବେହେଁ ନ ଡର ॥

ସେତେବେଳେ ଉଚ୍ଚଶିକ୍ଷିତ ଯୁବକ କେତେଜଣ ଅବା ଥିଲେ ? ସାରା ଓଡ଼ିଶାରେ ସେମାନେ ଆଙ୍ଗୁଠିରେ ଗଣି ହୋଇଯିବେ । ଓକିଲାତି ପାଶ୍ କଲା ପରେ ଗୋପବନ୍ଧୁ ଇଚ୍ଛା କରିଥିଲେ ବଡ଼ ଓକିଲ ହୋଇପାରିଥାନ୍ତେ । ବଡ଼ ସରକାରୀ ଚାକିରି ତାଙ୍କ ପାଦତଳେ ମୁଣ୍ଡିଆ ମାରୁଥିଲା; କିନ୍ତୁ ସେ ତ ପିଲାଦିନୁ ପରପାଇଁ ଭାବିଲେ । ତେଣୁ ଏସବୁ ତାଙ୍କୁ ପ୍ରଲୋଭିତ କରିପାରିଲା ନାହିଁ । ଗୋପବନ୍ଧୁ ଭାବିଲେ ସେ ସିନା ପାଠ ପଢ଼ିଲେ; କିନ୍ତୁ ତାଙ୍କ ଗ୍ରାମର, ତାଙ୍କ ଦେଶର ଅଧିକାଂଶ ଅଶିକ୍ଷିତ । ତେଣୁ ପାଠ ପଢ଼ିବା ପାଇଁ ବିଦ୍ୟାଳୟଟିଏ ଦରକାର ।

ପାଠ କେବଳ ଚାକିରି ପାଇଁ, ସେପରି ସ୍କୁଲରେ ପଢ଼ା ହେବନାହିଁ । କିରାଣୀ ତିଆରି କରିବା ପାଇଁ ସେ ବିଦ୍ୟାଳୟ ଏକ କାରଖାନା ହେବ । ସେଥିପାଇଁ ସେ କହିଲେ—"ଟଙ୍କା ମଣିଷ ତିଆରି କରୁଛି । ମନୁଷ୍ୟ ଲୋଡ଼ିଲେ ପାଇବ; କିନ୍ତୁ ସ୍ୱାର୍ଥକୁ ବଳିଦେଇ ମଣିଷ ଗଢ଼ିପାରୁଛନ୍ତି କେତେଜଣ ? କୁମ୍ଭାର ମାଟି ପିଣ୍ଡୁଳାଧରି ଦେବପ୍ରତିମା ଗଢ଼ୁଛି । ସେହିଭଳି ମନୁଷ୍ୟ ପିଣ୍ଡରୁ ଶିକ୍ଷକମାନଙ୍କୁ ପ୍ରକୃତ ମନୁଷ୍ୟ ଗଢ଼ିବାକୁ ହେବ । ଏ କାର୍ଯ୍ୟ ଅତି କଠିନ; କିନ୍ତୁ

ଏହାଛଡ଼ା ଉପାୟ ନାହିଁ ।" ସେ ସତ୍ୟବାଦୀ ବନ ବିଦ୍ୟାଳୟର ପରିକଳ୍ପନା କଲେ ।

ନୀଳକଣ୍ଠ, ହରିହର ଓ ଅନନ୍ତ ମିଶ୍ରଙ୍କ ସହ ସେ ଶପଥ କରିଥିଲେ, "ସରକାରୀ ଚାକିରି କରିବା ନାହିଁ । ଜନ୍ମହୋଇ ଦେଶକୁ ଯାହା ଦେଖିଥାଇ ମଲାବେଳେ ତାହାଠାରୁ ଉନ୍ନତ, ସୁନ୍ଦର ଅବସ୍ଥାରେ ଛାଡ଼ିଯିବା ।"

ସତ୍ୟବାଦୀ ବିଦ୍ୟାଳୟ ବକୁଳ, କୁରୀଅନା ଗଛତଳେ ଆରମ୍ଭ ହେଲା । କେତେ ବଖରା ଚାଳଘର ମଧ୍ୟ ତିଆରି ହେଲା ।



ବିଦ୍ୟାଳୟରେ ଜାତିଭେଦ ପ୍ରଥା ରହିଲା ନାହିଁ । ଛାତ୍ରାବାସରେ ସମସ୍ତେ ଏକାଠି ବସି ଖାଇଲେ । ସମୂହ ପ୍ରାର୍ଥନାଠାରୁ ସୂତାକଟା ପର୍ଯ୍ୟନ୍ତ ପ୍ରତ୍ୟେକରେ ସମସ୍ତେ ଏକ ପରିବାରର ବୋଲି ଆପଣାକୁ ମନେକଲେ ।

କୁସଂସ୍କାର ବିରୁଦ୍ଧରେ ଏଇମାନେ ଯୁଦ୍ଧ ଘୋଷଣା କରି ଦେଇଥାନ୍ତି । ପଣ୍ଡିତ ନୀଳକଣ୍ଠ ସେତେବେଳେ ଶାସନୀ ବ୍ରାହ୍ମଣ ଯୁବକହୋଇ ପ୍ରଥମେ ନିଶ ରଖିଲେ । ଏଥିପାଇଁ ରକ୍ଷଣଶୀଳ ବ୍ରାହ୍ମଣ ସମାଜରେ ହଇଚଇ ସୃଷ୍ଟି ହେଲା । ସମସ୍ତେ ଭାବିଲେ—ଏ ଟୋକାପଞ୍ଝା ଏଇଭଳି ମାତିଲେ ବ୍ରାହ୍ମଣ ସମାଜ ଉଚ୍ଛନ୍ନ ହୋଇଯିବ । ଆଉ କି ଧର୍ମ ରହିବ ?

ଭଲ କାମର ଶତ୍ରୁ ବହୁତ । ବାଧାବିଘ୍ନ ଅନେକ । ନୀଳକଣ୍ଠ ଏଥିପାଇଁ ସମାଜରୁ ବାସନ୍ଦ ହେଲେ । ତାଙ୍କୁ ଏକଘରକିଆ କରି ଦିଆଗଲା ।

ଏ ଯୁବକମାନେ ତଥାପି ଦବିଲେ ନାହିଁ ।

ରାଗ କ୍ରୋଧରେ ସେମାନେ ବିଦ୍ୟାଳୟ ଗୃହରେ ନିଆଁ ଲଗାଇଦେଲେ ।

ଏ ଖବର ଗୋପବନ୍ଧୁ ପୁରୀରେ ପାଇଲେ । ସେ ହସି ହସି କହିଲେ—"ସ୍କୁଲ ପାଇଁ କୋଠାଘର ହେବା ବୋଧହୁଏ ଭଗବାନଙ୍କ ଇଚ୍ଛା ।"

ପୂର୍ଣ୍ଣପ୍ରାଣରେ ପୁଣି ଲାଗିଲେ । ପଣ୍ଡିତ ଗୋଦାବରୀଶ ଏହି ବିଦ୍ୟାଳୟରେ ଯୋଗଦେଲେ । ବିଦ୍ୟାଳୟଟି ପ୍ରକୃତରେ ମଣିଷ ତିଆରି କାରଖାନାରେ ପରିଣତ ହେଲା । ସେତେବେଳେ ଯେଉଁମାନେ ସତ୍ୟବାଦୀ ବନ ବିଦ୍ୟାଳୟର ଛାତ୍ରଥିଲେ ପ୍ରତ୍ୟେକ ସେମାନଙ୍କର ନିଜ ନିଜ ଜୀବନରେ ପରିବାର କ'ଣ ଦେଶ ପାଇଁ ବି ଆଦର୍ଶ ହୋଇ ଉଠିଛନ୍ତି ।

---

# କାହିଁ ଏଥି ରାଜା ଏ ଯେ ନଉକର ସାହୀ
# ପ୍ରଜା ସୁଖ ଶାନ୍ତି ନାଶେ ବୃଥା ଧର୍ମ ଦ୍ୱାହି ।

ବଡ଼ି ଓ ମରୁଡ଼ି ଓଡ଼ିଶାର ଚିର ସହଚର, ଆଜିକାଲି ତ ଜଳସେଚନ ପାଇଁ ହୀରାକୁଦ ବନ୍ଧଠାରୁ ଆରମ୍ଭ କରି କେତେ କେନାଲ ହୋଇଗଲାଣି; କିନ୍ତୁ ସେତେବେଳେ ପରାଧୀନ ଦେଶରେ ଏସବୁ ଆଦୌ ନ ଥିଲା । ବନ୍ୟାରେ ଲୋକମାନେ ହନ୍ତସନ୍ତ ହେଉଥିଲେ । ବର୍ଷା ଭଲ ନ ହୋଇ ଅପାଳକ ହେଲେ ଖାଇବା ବିନା ପୋକ ମାଛି ଭଳି ରାସ୍ତାକଡ଼ରେ ମରିପଡ଼ୁଥିଲେ ।

ସରକାର ତ ବିଦେଶୀ ତା'ର ଦରକାର ଟଙ୍କା । ସେ କାହିଁକି ଲୋକଙ୍କର କରୁଣ କାହାଣୀ ଶୁଣିବ ? ଲୋକମାନଙ୍କ ପାଖକୁ ସେମାନେ କ'ଣ ଆସନ୍ତି ? ପାଦରେ କାଦୁଅ ଲାଗିବ ପରା ! ଆଉ ଯଦି ଲୋକମାନେ ତାଙ୍କ ପାଖକୁ ଯାଆନ୍ତି ସେଗୁଡ଼ାକ ତାଙ୍କୁ ଗନ୍ଧାନ୍ତି । ଦୁଃଖ ଶୁଣିବ କିଏ ?

ଭଗବାନ ସଦାବେଳେ କିନ୍ତୁ ଦୁଃଖୀର ଡାକ ଶୁଣନ୍ତି । ସେ ସେଥିପାଇଁ ସତେଯେପରି ଗୋପବନ୍ଧୁଙ୍କୁ ପଠାଇଥିଲେ । ସେ ପଙ୍କରେ ଲୋଟିଲେ, ହଇଜାରେ ଖଟିଲେ । ଲୋକଙ୍କ ସଙ୍ଗେ ମିଶିଲେ । ତାଙ୍କ ଦୁଃଖ ଶୁଣିଲେ । ତାଙ୍କ ପିଣ୍ଡାରେ ଶୋଇ ସେମାନଙ୍କର କରୁଣ କାହାଣୀ ଅଙ୍ଗେ ନିଭେଇଲେ ।

ତାଙ୍କ ଭିତରୁ ମଣିଷପଣିଆ ଗର୍ଜି ଉଠିଲା । ସେ କହିଉଠିଲେ—"ମରିବାର

ଅଧିକାର କାହାର ନାହିଁ–ରାଜ୍ୟର ପାତକ ରାଜା ମୁଣ୍ଡରେ । ଏ ବିରାଟ ଦେଶରେ ଯଦି କୌଣସି ଲୋକ ନ ଖାଇ ମରେ; ତେବେ ତା'ର ଶେଷ ନିଃଶ୍ୱାସ ସରକାରଙ୍କ ଉପରେ ପଡ଼ିବ ଏବଂ ସେମାନଙ୍କ ମୃତ୍ୟୁ ପାଇଁ ସରକାର ହିଁ ଦାୟୀ ରହିବେ । ସରକାରଙ୍କର ଏ ଅବହେଳିତଙ୍କ ପ୍ରତି ନିଶ୍ଚୟ କର୍ତ୍ତବ୍ୟ ଅଛି । ସରକାର ତାଙ୍କର କର୍ତ୍ତବ୍ୟ ସମ୍ପନ୍ନ କରନ୍ତୁ ।"

ଏଇଭଳି କେତେ ନା କେତେ କାହାଣୀ ଅଛି । ସେଥିରୁ ଗୋଟିଏ କହୁଛି । ଉଣେଇଶି ଶହ ଅଠର ମସିହାରେ ଓଡ଼ିଶାରେ ଭଲ ବର୍ଷା ହେଲାନାହିଁ । ଦେଶରେ ମରୁଡ଼ି ହେତୁ ଫସଲ ଆଦୌ ଭଲ ଅମଳ ହେଲାନାହିଁ । ଧାନ ଚାଉଳ ଦର ହୁ ହୁ ହୋଇ ବଢ଼ିଗଲା । ଲୋକମାନେ ପେଟଜଳକଳରେ ଗାଆଁ ଗଣ୍ଡା ଛାଡ଼ି ରେଙ୍ଗୁନ ଆଉ କଲିକତାକୁ ଧାଇଁଲେ ।

ବିପଦ ଯେତେବେଳେ ଆସେ ସେ କ'ଣ ଏକା ଆସେ ? ସେ ତା'ର ସାଙ୍ଗ ସାଥୀଙ୍କୁ ମଧ୍ୟ ନେଇକରି ଆସିବାକୁ ଭୁଲି ନ ଥାଏ । ଠିକ୍ ତା' ପରବର୍ଷ ଦେଶରେ ଘୋର ବନ୍ୟା ହେଲା । ପାଣିରେ ସାରା ଦେଶଟା ଚହଲା ପଡ଼ି ଉଠିଲା । ଭୋକ, ଉପାସ ଆଉ ବଢ଼ିରେ ଲୋକମାନେ ପୋକମାଛି ପରି ମରିବାକୁ ଲାଗିଲେ ।

ଗୋପବନ୍ଧୁ ସେତେବେଳେ କ'ଣ ଚୁପ୍ ହୋଇ ବସି ରହି ପାରନ୍ତେ ? ଚୁଡ଼ା, ଚାଉଳ ଡଙ୍ଗାରେ ଧରି ସ୍ୱେଚ୍ଛାସେବକମାନଙ୍କୁ ନେଇ ଲୋକମାନଙ୍କ ପାଖରେ ପହଞ୍ଚିଲେ । ଘନ ଘନ ଧରି ପାଣି ଘେର ଭିତରେ ଥିବା ଲୋକମାନେ ସତେଯେପରି ଦେବତାଙ୍କ ଦର୍ଶନ ପାଇଲେ । ଚୁଡ଼ା, ଚାଉଳ ଲୁଗା ନେଲେ । ପେଟ ପୂରିଲା, ଦେହ ଘୋଡ଼େଇ ହେଲା । ଆଉ କଅଁଳ ବଚନରେ ଆତ୍ମା ତୃପ୍ତ ହେଲା ।

ଗୋପବନ୍ଧୁ ଦେଖିଲେ ଏ କେବଳ ତାଙ୍କର କାମ ନୁହେଁ, ସରକାରଙ୍କର ମଧ୍ୟ ଏମାନଙ୍କ ପ୍ରତି ଯଥେଷ୍ଟ ଦାୟିତ୍ୱ ଅଛି । ତେଣୁ ସେ ଏକଥା ଇଂରେଜ ସରକାରଙ୍କୁ ଜଣାଇଲେ ।



ଗୋପବନ୍ଧୁଙ୍କର କରୁଣ ନିବେଦନ ଶୁଣି ଇଂରେଜ ସରକାର ତାଙ୍କର ଜଣେ ପ୍ରତିନିଧିଙ୍କୁ ଅବସ୍ଥା ଦେଖି ଆସିବା ପାଇଁ ପଠାଇଲେ । ତାଙ୍କ ନାମ ମିଷ୍ଟର ୱୁଡ଼ନ୍ । ଇଂରେଜ ସାହେବ ତ ବଡ ଲୋକ । ପୂରାପ୍ୟାଣ୍ଟ, ପୋତା ପିନ୍ଧିଛନ୍ତି । ପଙ୍କ କାଦୁଅକୁ ଡର । ଏଣେ ଡଙ୍ଗାରେ ବସି ନାହାନ୍ତି । ପାଣି ଦେଖି ଛାନିଆଁ, ବାଟରୁ ସେ ଫେରିଆସିଲେ । ସରକାରଙ୍କୁ ରିପୋର୍ଟ ଦେଲେ—

"ପ୍ରକୃତରେ ଓଡ଼ିଶାରେ ଭଲ ଫସଲ ହୋଇଛି । କ୍ଷେତରେ ଏପର୍ଯ୍ୟନ୍ତ ଫସଲ ଠିଆହୋଇଛି । ଓଡ଼ିଶାର ସ୍ତ୍ରୀ ଲୋକମାନେ ହାତରେ ବିଶାଏ ବିଶାଏ ଓଜନର ସୁନା ଖଡ଼ୁ ପିନ୍ଧିଛନ୍ତି । ଦୁର୍ଭିକ୍ଷ ଆଦୌ ନାହିଁ । ଦୁର୍ଭିକ୍ଷ କଥା କେବଳ ମନଗଢ଼ା ପ୍ରଚାର ।

ଏକଥା ଗୋପବନ୍ଧୁ ସହନ୍ତେ କେତେବେ ? ପନ୍ଥଘୁଞ୍ଚା ନାହିଁ ବୀରର ଜାତକେ । ସେ ବିହାର ଓଡ଼ିଶା ବିଧାନ ସଭାର ସେତେବେଳେ ସଭ୍ୟ ଥାଆନ୍ତି । ଓଡ଼ିଶାର ଦୁର୍ଭିକ୍ଷ ବିଷୟରେ ସରକାରଙ୍କର ରିପୋର୍ଟକୁ ଦୃଢ଼ଭାବରେ ଖଣ୍ଡନକରି ସେ କହିଲେ—ସରକାର ଯଦି ପିତଳ ଖଡ଼ୁକୁ ସୁନା ଏବଂ ବାଳୁଙ୍ଗା ଗଛକୁ ଧାନ ବୁଝନ୍ତି, ମୁଁ ତେବେ କହିବି ଏହାଠାରୁ ବଳି ଦୁର୍ଭାଗ୍ୟର ବିଷୟ କିଛି ନାହିଁ । ସରକାର ଲୋକମାନଙ୍କ ପାଖକୁ ଯାଆନ୍ତୁ । ସେମାନଙ୍କ ଅବସ୍ଥା ବୁଝନ୍ତୁ । ଏହାକହି ସେ ଲୋକମାନଙ୍କର କରୁଣ କାହାଣୀ ବର୍ଣ୍ଣନା କଲାବେଳେ କାନ୍ଦି ପକାଇଲେ ।

ତାଙ୍କର କରୁଣ କ୍ରନ୍ଦନ ଲାଟସାହେବଙ୍କର ମନକୁ ତରଳାଇ ଦେଲା । ସେ ଓଡ଼ିଶା ନିଜେ ଆସିଲେ । ଲୋକମାନଙ୍କ ଅବସ୍ଥା ଦେଖିଲେ । ସରକାରୀ ସାହାଯ୍ୟ ଯାହା ଦେବାକଥା ସେତକ ଯଥେଷ୍ଟ ପରିମାଣରେ ଦେଲେ ।

ଲୋକମାନେ କହି ଉଠିଲେ, ପ୍ରକୃତରେ ଗୋପବନ୍ଧୁ ଦୀନ ଦରିଦ୍ରଙ୍କର ଦୀନବନ୍ଧୁ ।

———

**ହେ ଛାତ୍ର ମଣ୍ଡଳୀ··ଗଲା ଏବେ ଜଣା**

**ତୁମ ଦେଶ ଅନୁରାଗ; ଜଘନ୍ୟ ଛଳନା ।**

ଗୋଟିଏ ଗୋଟିଏ ଘଟଣା ଯଦିଓ ଗପ ପରି ଶୁଣିବାକୁ ଲାଗେ; କିନ୍ତୁ ସେଇଥିରୁ ଜଣାପଡେ ଜଣ ଜଣଙ୍କୁ, କାହିଁକି ଲୋକମାନେ ମହାତ୍ମା ବୋଲି କହନ୍ତି । ଥରେ ପୁରୀ ଜିଲ୍ଲାରେ ବନ୍ୟାହୋଇ ସବୁ ଫସଲ ଧୋଇ ହୋଇଗଲା । ଲୋକମାନେ ଖାଇବା ପିଇବା ପାଇଁ କଷ୍ଟ ପାଇଲେ । ବେଙ୍ଗ ସାଙ୍ଗକୁ କୋରଡ଼ା ପରି ଅଖାଦ୍ୟ ପ୍ରଭୃତି ଖାଇବାରୁ ଲୋକମାନଙ୍କ ଭିତରେ ହଇଜା ଦେଖାଗଲା ।

ଭୋକିଲା ଲୋକମାନଙ୍କ ମୁହଁରେ ମୁଠାଏ ଭାତ ଦେବା ଅସଲ କାମ । ତା'ଛଡ଼ା ରୋଗରେ ଚିକିତ୍ସା ଅଭାବରୁ ମରଣକୁ ବରଣ କରୁଥିବା ଜନତା ପାଇଁ ଟୋପାଏ ଔଷଧ ନିହାତି ଦରକାର । ଲୋକମାନଙ୍କର ଏ କରୁଣ ଅବସ୍ଥା ଦେଖି ଗୋପବନ୍ଧୁଙ୍କର ହୃଦୟ ତରଳିଗଲା । ସେ କେତେଜଣ କଲେଜ ଛାତ୍ରଙ୍କୁ ସଙ୍ଗରେ ଧରି ସାହାଯ୍ୟ ଭିକ୍ଷା ଆରମ୍ଭ କଲେ ।

ଚୁଡ଼ା, ଚାଉଳ, ପୁରୁଣା ଲୁଗା ବହୁତ ସଂଗ୍ରହ ହେଲା ! କିନ୍ତୁ ସେ ସବୁକୁ ସଙ୍ଗରେ ନେଇ ମହାମାରୀ· ବ୍ୟାପିଥିବା ଅଞ୍ଚଳକୁ ଯିବାକୁ କେହି ମଙ୍ଗିଲେ ନାହିଁ ।

ଶେଷରେ ଗୋପବନ୍ଧୁଙ୍କ ପ୍ରେରଣାରେ କେତେକ ଛାତ୍ର ସ୍ୱେଚ୍ଛାସେବକ ଭାବରେ ଅଗ୍ରସର ହେଲେ । ଏହି ସେବା ଦଳର ସେନାପତି ହେଲେ ଗୋପବନ୍ଧୁ । ପ୍ରତ୍ୟେକ ପିଠିରେ ଗୋଟିଏ ଗୋଟିଏ ମୁଣିରେ ଚୁଡ଼ା, ଚାଉଳ ଓ ଲୁଗା ଧରି ଗୋପବନ୍ଧୁଙ୍କ ପଛରେ ପଦଯାତ୍ରା ଆରମ୍ଭ କରିଦେଲେ । ଯେଉଁଠାରେ ନଦୀ ପାର ହେବାକୁ ହେଉଥିଲା ସେଠାରେ ଡଙ୍ଗାର ଆଶ୍ରୟ ନେଉଥିଲେ । ଲୋକମାନଙ୍କ ପାଇଁ ସଂଗ୍ରହ ହୋଇଥିବା ଚୁଡ଼ା, ଚାଉଳ ବ୍ୟତୀତ ନିଜ ନିଜର ବ୍ୟବହାର ପାଇଁ ଅଲଗା ଚାଉଳ ଓ ଚୁଡ଼ା ସଙ୍ଗରେ ନେଇଥାନ୍ତି ।

ଗୋଟିଏ ଗାଆଁରୁ ଆଉ ଗୋଟିଏ ଗାଆଁକୁ ଯିବା ପାଇଁ ବହୁତ କଷ୍ଟ ହେଉଥିଲା । ତଥାପି ସେମାନେ କଷ୍ଟକୁ ଆଦୌ ଖାତିର କରୁ ନ ଥିଲେ । ଯେତେବେଳେ ଯାଇ ଯେଉଁ ଗାଆଁରେ ପହଞ୍ଚୁଥିଲେ ଲୋକମାନେ ଠିକ୍ ଦେବତାଙ୍କ ଅବତାର ଭଳି ସେମାନଙ୍କ ପାଖରେ ହାତପାତି ଘେରି ଯାଉଥିଲେ । ହାଡ଼ କଙ୍କାଳସାର ଫୁଙ୍ଗୁଳା ଦେହ ଦେଖି ସେମାନେ ବିକଳରେ ଅସ୍ଥିର ହୋଇ ଉଠୁଥିଲେ । ସେମାନେ ଲୋକମମାନଙ୍କ ଭିତରେ ଚୁଡ଼ା, ଚାଉଳ ଓ ଔଷଧ ବାଣ୍ଟି ଦେଉଥିଲେ ।

ଗୋପବନ୍ଧୁଙ୍କୁ ଲୋକମାନେ ଦେବତା ଭଳି ମନେ କରୁଥିଲେ । ସେମାନଙ୍କର ବିକଳ ଦେଖି ଦରିଦ୍ରସଖା ଗୋପବନ୍ଧୁଙ୍କ ଆଖିରୁ ଲୁହ ଝରି ଝରି ହୋଇ ବହିଯାଉଥିଲା ।

ସ୍ୱେଚ୍ଛାସେବକମାନେ ନିଜ ପାଇଁ ନେଇଥିବା ଚାଉଳ ଦୁଇ ତିନିଦିନ ଭିତରେ ସରିଗଲା । ଏଣିକି ସେମାନେ ଖାଇବେ କ'ଣ ?

ସେମାନଙ୍କ ଭିତରୁ ଜଣେ କହିଲା—ଆମ ଚାଉଳ ସିନା ସରିଯାଇଛି, ବଣ୍ଟା ହେବାପାଇଁ ଆସିଥିବା ଚାଉଳ ତ ଅଛି । ସେଥିରୁ କିଛି ଆମ ପାଇଁ ରୋଷାଇ କରିନେବା । ତାହା ହିଁ ହେଲା ।

ଚାଉଳ ସରିଯାଇଥିବା କଥା ଗୋପବନ୍ଧୁ ଜାଣିଥାନ୍ତି । ତେଣୁ କର୍ମୀମାନଙ୍କ ପାଇଁ ଆଉ ଅଧିକା ଚାଉଳ ପଠାଇବା ପାଇଁ ସହରକୁ ଖବର ଦେଇଥାନ୍ତି ।

ସାହାଯ୍ୟ ବାଣ୍ଟି ସାରି ଗୋପବନ୍ଧୁ ବସାକୁ ଫେରିଲେ । ଖଲପତ୍ରରେ ଖାଇବାକୁ ଭାତ ବଢ଼ା ହୋଇଥିବାର ଦେଖି ସେ ଚମକି ପଡ଼ିଲେ । କହିଲେ—ଆମ ପାଇଁ ତ ଚାଉଳ ନ ଥିଲା—ଏ ଭାତ କେଉଁଠୁ ଆସିଲା ?

ଛାତ୍ର ଜଣକ ଉତ୍ତର ଦେଲେ—ସାର୍ ! ଆମ୍ଭେମାନେ ବଣ୍ଟା ଚାଉଳରୁ କିଛି ରାନ୍ଧିଛୁ ।

ଏହିଭଳି ଉତ୍ତର ଶୁଣିବା ପରେ ଗୋପବନ୍ଧୁଙ୍କ ଆଖିରୁ ଧାର ଧାର ଅଶ୍ରୁ ବହିବାକୁ ଲାଗିଲା । ଖାଇବାକୁ ବଢ଼ା ହୋଇଥିବା ପତ୍ରରୁ ସେ ଉଠିଗଲେ । ଗୋପବନ୍ଧୁ ନ ଖାଇବାରୁ ଅନ୍ୟ ସ୍ୱେଚ୍ଛାସେବକମାନେ ମଧ୍ୟ ଖାଇଲେ ନାହିଁ । ଗୋପବନ୍ଧୁ କେବଳ ଏତିକି କହିଲେ—ଓଳିଏ ଉପାସ ରହିବା କଷ୍ଟ ତୁମେ ସହ୍ୟକରି ପାରିଲ ନାହିଁ । ଭାବିଲ, ଯେଉଁମାନେ ଦିନ ଦିନ ଧରି ଉପାସ ଅଛନ୍ତି ସେମାନଙ୍କୁ କେତେ କଷ୍ଟ ହେଉ ନ ଥିବ ? ଲୋକଙ୍କୁ ସାହାଯ୍ୟ ଦେବାପାଇଁ ମାଗି ଆଣିଥିବା ଦ୍ରବ୍ୟକୁ ଯେ ଆତ୍ମସାତ କରେ ତାହାଠାରୁ ବଡ଼ ପାପୀ ବୋଧହୁଏ ଭଗବାନଙ୍କ ସୃଷ୍ଟିରେ ଆଉ କେହି ନାହାନ୍ତି ।

ନିଜ ନିଜର ଭୁଲ ପାଇଁ ଛାତ୍ରମାନେ ନୀରବରେ ମଥାପୋତି ତଳକୁ ଚାହିଁ ରହିଲେ ।



ଗୋପବନ୍ଧୁ ନିକଟସ୍ଥ ଗ୍ରାମକୁ ଗଲେ । ଗୋଟିଏ ଭୋକିଲା ପିଲାକୁ ଡାକିଆଣି ତାହାକୁ ସେ ଭାତତକ ଆପଣା ହାତରେ ଖୁଆଇ ଦେଲେ ।

———

## ପ୍ରେମ ଭାବ ଯାର ଅନ୍ତରେ ପୂରିତ
## ସର୍ବ ପ୍ରାଣୀ ହୃଦ—ତା ହୃଦେ ଅଙ୍କିତ ।

ବନ୍ୟା ସମୟରେ ଏପରି ହୁଏ ଯେ ସଦାବେଳେ ଖାଇବା ପିଇବା ଠିକ୍ ସମୟରେ ହେବା ସମ୍ଭବପର ହୁଏ ନାହିଁ । ଦିନ ଦିନକର ଘଟଣା ଏପରି ରୂପ ନିଏ; ଯେଉଁଟି ଅନ୍ୟମାନଙ୍କ ପାଇଁ ଇତିହାସ ହୋଇ ରହିଯାଏ ।

ପାଣିଘେର ଭିତରେ ଦିନ ଦିନ ଧରି ନ ଖାଇ, ନ ପିଇ, ଲୋକମାନେ କଷ୍ଟରେ ପଡ଼ିରହି ଥିଲାବେଳେ ସେମାନଙ୍କ ପାଖରେ ପହଂଚିବା ସମ୍ଭବପର ହୋଇପାରେ ନାହିଁ ।

ସରକାରୀ ସାହାଯ୍ୟ ଓ ବେସରକାରୀ ସାହାଯ୍ୟ ଭିତରେ ଅନେକ ପାର୍ଥକ୍ୟ । ଗୋପବଂଧୁ ଓ ତାଙ୍କର ସହକର୍ମୀମାନେ ସମସ୍ତେ ସରକାରୀ ଲୋକ ନୁହନ୍ତି । ମାଗି ଯାଚି ସଂଗ୍ରହ କରି ସାହାଯ୍ୟ କରିବା କଥା ।

ଥରେ କର୍ମୀମାନଙ୍କର ଖାଇବା ଚାଉଳ ସରିଯାଇ ଥାଏ । ତେଣୁ ସକାଳୁ କେହି କିଛି ଖାଇ ନ ଥାନ୍ତି । ଉପାସ ରହିଲେ ବୋଲି ସେବା କାର୍ଯ୍ୟ ବନ୍ଦ କରି ନଥାନ୍ତି । ସାହାଯ୍ୟ ବଣ୍ଟା ଚାଲିଥାଏ ।

ସେଦିନ ଓପରଓଳି ଗୋପବନ୍ଧୁ ଆଉ ଗୋଟିଏ ଗାଆଁକୁ ଯାଇଥାନ୍ତି ।

ଚୁଡ଼ା, ଗୁଡ଼ଲ ଓ ଔଷଧ ବଣା ଗଲା ପରେ ଡଙ୍ଗାରେ ସହରରୁ କର୍ମୀମାନଙ୍କ ପାଇଁ ଚାଉଳ ଆସି ପହଞ୍ଚିଲା । ସକାଳୁ ତ ସମସ୍ତେ ଉପାସ ଥିଲେ । ଚାଉଳ ଆସି ପହଞ୍ଚିବା କ୍ଷଣି ରୋଷାଇ ଆରମ୍ଭ ହେଲା ।

କର୍ମୀମାନେ ସାହାଯ୍ୟ ବଣ୍ଟି ସାରି ବସାକୁ ଫେରି ଆସିଲେ । ସମସ୍ତଙ୍କ ସହିତ ଗୋପବନ୍ଧୁଙ୍କ ପାଇଁ ମଧ୍ୟ ରନ୍ଧା ହୋଇଥିବା ଭାତ ବଢ଼ା ଗଲା ।



ଗୋପବନ୍ଧୁ ଭାତପତ୍ର ପାଖରେ ବସି ଖାଇବାକୁ ଆରମ୍ଭ କରୁଛନ୍ତି ଏହି ସମୟରେ ତାଙ୍କ ଖାଇବା ପ୍ରତି ଏକାଗ୍ରୟରେ ଚାହିଁ ରହିଥିବା ଗୋଟିଏ ସ୍ତ୍ରୀଲୋକଠାରେ ତାଙ୍କର ଆଖି ଲାଖି ରହିଲା । ସ୍ତ୍ରୀ ଲୋକଟି ଅତି ରୋଗିଣା ଦିଶୁଥିଲା । ତାହା ସହିତ ଦୁଇ ତିନୋଟି ପିଲା ଥିଲେ । ସମସ୍ତେ ଲଙ୍ଗଳା ।

ସ୍ତ୍ରୀ ଲୋକଟି କାନ୍ଦି କାନ୍ଦି କହି ଉଠିଲା—ଆଜ୍ଞା, ଆଜକୁ ପାଞ୍ଚଦିନ ହେବ ମୁଁ ଭାତର ମୁହଁ ଦେଖି ନାହିଁ । ପିଲା ଛଟୋଟିଙ୍କର ବକଳ ଆଉ ସାହିପାରୁ ନାହିଁ । ନିଜେ ମରିପାରୁ ନାହିଁ କି ପିଲା ଛଟୋଟିଙ୍କୁ ମାରିପାରୁ ନାହିଁ । ଆପଣ ଦୟାକରି ଗଣ୍ଡେ ଭାତ ଦିଅନ୍ତୁ । ବହୁତ ଧର୍ମ ଆପଣଙ୍କର ହେବ ।

ଗୋପବନ୍ଧୁ ଖାଇବା ପାଇଁ ବାଢ଼ିଥିବା ଭାତପତ୍ରକୁ ନିଜେ ଉଠାଇ ନେଇ ସେ ସ୍ତ୍ରୀଲୋକଟିର କାନିରେ ଢାଳିଦେଲେ । ପାଞ୍ଚଦିନର ଉପାସିଆ ପିଲା ଛଟୋଟି ଭାତ ଦେଖି ଆନନ୍ଦରେ ଖିଲ ଖିଲ ହସି ଉଠିଲେ ।

ସେମାନଙ୍କର ଆନନ୍ଦ ଦେଖି ଗୋପବନ୍ଧୁଙ୍କ ଭୋକିଲା ପେଟ ପୂରି ଉଠିଲା ।

ସ୍ୱେଚ୍ଛାସେବକମାନେ ଆଶ୍ଚର୍ଯ୍ୟରେ ଚାହିଁ ରହିଲେ । ସେମାନେ କ'ଣ ମଣିଷ ଦେଖୁଛନ୍ତି ନା ମଣିଷ ରୂପରେ ଦେବତା ଦେଖୁଛନ୍ତି ।

ସମସ୍ତଙ୍କୁ ଖାଇବାକୁ ଗୋପବନ୍ଧୁ ଆଦେଶ ଦେଲେ । ହାଣ୍ଡିରେ ଆଉ ଭାତ ନ ଥିଲା; ତଥାପି ଗୋପବନ୍ଧୁଙ୍କ ମନରେ ଟିକିଏ ବୋଲି ଦୁଃଖ ନ ଥିଲା ।

— ——

**"ଗାନ୍ଧୀ—ଭଗୀରଥ ନିଜ ପୁଣ୍ୟ ବଳେ**
**ଆଣିଲେ ଅସଂଖ୍ୟ ଜାହ୍ନବୀ ଉତ୍କଳେ"**

ବକୁଳ ବନ ବିଦ୍ୟାଳୟରେ ରହି ଗୋପବନ୍ଧୁ ପାଠଶାଳା କଥା ବୁଝୁଥିଲେ । ତାହା ସଙ୍ଗେ ସଙ୍ଗେ ସମଗ୍ର ଓଡ଼ିଶା କଥା ମଧ୍ୟ ସେ ଚିନ୍ତା କରୁଥିଲେ ।



ସେତେବେଳେ ମହାତ୍ମା ଗାନ୍ଧିଙ୍କର ଅସହଯୋଗ ଆନ୍ଦୋଳନ ଭାରତରେ

ଆରମ୍ଭ ହୋଇଯାଇଥାଏ । ଗୋପବନ୍ଧୁ ଓଡ଼ିଶାରେ ସେହି ଆନ୍ଦୋଳନକୁ ପ୍ରଥମେ ପ୍ରଚାର କରାଇଥିଲେ । ଓଡ଼ିଶାର ଅବସ୍ଥା ଦେଖାଇବା ପାଇଁ ସେ ମହାତ୍ମାଗାନ୍ଧିଙ୍କୁ ନିମନ୍ତ୍ରଣ କରିଥିଲେ । ତାଙ୍କ ଅନୁରୋଧ ରକ୍ଷାକରି ଉଣେଇଶ ଶହ ଏକୋଇଶି ମସିହାରେ ଗାନ୍ଧିଜୀ ଓଡ଼ିଶା ଆସିଥିଲେ ।

କଟକଠାରେ କାଠଯୋଡ଼ି ନଈ ବାଲି ଉପରେ ଗୋଟିଏ ବିରାଟ ସଭା ହୋଇଥିଲା । ଗାନ୍ଧିଜୀ ଲୋକମାନଙ୍କୁ ଇଂରେଜ ସରକାର କରୁଥିବା ଅତ୍ୟାଚାର କଥା ବୁଝାଇ ଦେଇଥିଲେ । ବିଦେଶୀ ଦ୍ରବ୍ୟ ବ୍ୟବହାର ନ କରିବା ପାଇଁ ସେ ସମସ୍ତଙ୍କୁ ଉପଦେଶ ଦେଲେ । ସେ କହିଲେ ଆମେ ଆମ ଦେଶ ତିଆରି ଜିନିଷ ବ୍ୟବହାର କଲେ ସେହି ପଇସା ଆମ ଦେଶରେ ରହିବ । ତେଣୁ ସମସ୍ତେ ଘରେ ଘରେ ଅରଟ ଚଳାଇ ସେହି ସୂତାରେ ଖଦଡ଼ ଲୁଗା ପିନ୍ଧିବା ପାଇଁ ସେ ପରାମର୍ଶ ଦେଲେ ।

ଭଗୀରଥ ଭଳି ଗାନ୍ଧିଜୀଙ୍କୁ ଗୋପବନ୍ଧୁ ଓଡ଼ିଶା ଅଣାଇଥିଲେ । ଓଡ଼ିଶା ଲୋକମାନଙ୍କର ଦୁଃଖ ଦେଖି ସେ କାନ୍ଦି ପକାଇଥିଲେ ।

ସତ୍ୟବାଦୀ ବନ ବିଦ୍ୟାଳୟକୁ ଦେଖି ଗାନ୍ଧିଜୀ ସନ୍ତୋଷ ଲାଭ କରିଥିଲେ ।

---

# ଚପଳ ବାଳକ ମନ୍ତ—ଅବିବେକୀ ନରେ ଅନୁରାଗ ପ୍ରକାଶନ୍ତ—ବାହ୍ୟ ବିଷୟରେ

ଗୋଟିଏ ଦିନର ଘଟଣା । ଗୋପବନ୍ଧୁଙ୍କର ବାହାରକୁ ଯିବାର ଥାଏ । ଧୋବା ଲୁଗା ଦେଇ ଯାଇଥିଲା । ସେ ଲୁଗା ପିନ୍ଧାଇ ଦେଖିଲେ ଯେ ସଫା କରୁ କରୁ ଧୋବା ଲୁଗାଟିକୁ ଚିରି ପକାଇଛି । ତେଣୁ ସେ ତାଙ୍କର ଜଣେ ବନ୍ଧୁଙ୍କୁ ବଜାରରୁ ଖଣ୍ଡିଏ ଲୁଗା କିଣି ଆଣିବା ପାଇଁ ପଠାଇଲେ । ସକାଳୁ ଗାଧୁଆ ହୋଇ ନ ଥିଲା । ତେଣୁ ସେ ଗାଧୋଇବାକୁ ଚାଲିଗଲେ ।

ବନ୍ଧୁ ଜଣକ ଏହା ଭିତରେ ଯାଇ ବଜାରରୁ ଭଲ ସରୁ ମିଲ୍ ଲୁଗା ଖଣ୍ଡିଏ କିଣି ଆଣି ତାକୁ କୁଞ୍ଚିକାଞ୍ଚି ଗୋପବନ୍ଧୁ ବସିବା ଚୌକି ଉପରେ ଥୋଇ ଦେଇଥାନ୍ତି । ତାଙ୍କର ଧାରଣା ଗୋପବନ୍ଧୁ ଏ ଲୁଗାଖଣ୍ଡି ଦେଖିଲେ ଅତ୍ୟନ୍ତ ଖୁସି ହେବେ ।

ଗାଧୋଇ ସାରି ଘର ଭିତରକୁ ଗୋପବନ୍ଧୁ ପଶି ଆସିଲେ । ପିନ୍ଧିବାକୁ ଥୁଆ ହୋଇଥିବା ସରୁ ମିଲ୍ ଲୁଗା ଖଣ୍ଡିକ ଦେଖିଲେ । ତାଙ୍କୁ ଜଣାଗଲା ସତେ ଯେପରି ଖଣ୍ଡିଏ ତାତିଲା ଲୁହା କିଏ ତାଙ୍କ ଦେହରେ ଚେଙ୍କିଦେଲା ।

ସେ ଅତି ଦୁଃଖିତ ହୋଇ କହି ଉଠିଲେ—"ଆମ ଦେଶବାସୀ ପଇସା ଅଭାବରୁ ଚିରକନା ଖଣ୍ଡେ ପାଇପାରୁ ନାହାନ୍ତି । ଶୀତରେ ଦେହ ଥରି ଯାଉଥିଲେ

ସୁଦ୍ଧା ଘୋଡ଼ାଇ ହେବାପାଇଁ ପୋଷାକ ପାଇପାରୁ ନାହାନ୍ତି । ସେହି ଗରିବ ଦେଶର ଲୋକ ହୋଇ ମୁଁ ଏତେ ମୂଲ୍ୟବାନ ଲୁଗା ପିନ୍ଧିବି କିପରି ? ଏହାଠାରୁ ବଳି ଲଜ୍ଜା ମୋ ପକ୍ଷରେ ଆଉ କ'ଣ ଅଛି ?"

ଏତକ କହି ସଙ୍ଗେ ସଙ୍ଗେ ସେ ଲୁଗାଖଣ୍ଡି ବନ୍ଧୁଙ୍କୁ ଫେରାଇ ଦେଲେ । ବଜାରରୁ ଖଣ୍ଡିଏ ଅଳ୍ପ ଦାମର ଆଣ୍ଠୁ ନ ଲୁଚିବା ଭଳି ଖଦଡ଼ ଲୁଗା ଆଣିବାକୁ କହିଲେ । ବନ୍ଧୁଜଣଙ୍କ ନିଜ ଭୁଲ ବୁଝିପାରିଲେ । ବଜାରରୁ ଖଣ୍ଡିଏ ଖଦଡ଼ ଧୋତି କିଣି ଆଣିଲେ । ଲୁଗାଖଣ୍ଡି ପିନ୍ଧିସାରି ସେ ହସି ହସି କହିଲେ— "ଏଇଭଳି ଲୁଗା ଆମ ଦେଶବାସୀଙ୍କର ପିନ୍ଧିବା ଲାଗି ଲୁଗା । ଆମ ହାତରେ ତିଆରି ଏହି ଲୁଗାଖଣ୍ଡି ଯେପରି ମଜବୁତ ସେହିପରି ଶସ୍ତା ।"

ସେ ସରଳ ଜୀବନଯାପନ କରୁଥିଲେ । ତେଣୁ ଦେଶର ଗରିବ ମୂଲିମୁଣ୍ଡିଆଙ୍କ ସହ ସେ ସହଜରେ ମିଶିପାରୁଥିଲେ । ସେମାନଙ୍କର ସୁଖ ଦୁଃଖ ହାନିଲାଭର ଖବର ବୁଝୁଥିଲେ । ଏତେ ପାଠ ପଢ଼ିଥିଲେ ସୁଦ୍ଧା ତାଙ୍କ ମନରେ ଗର୍ବ, ଅହଂକାର କିମ୍ବା ବଡ଼ପଣିଆ ଆଦୌ ନ ଥିଲା । ସମସ୍ତଙ୍କ ଭିତରେ ନିଜକୁ ସେ ଜଣେ ବୋଲି ଭାବୁଥିଲେ । ସେଥିପାଇଁ ସେ ଏ ଦେଶର ମଣ୍ଡଳମଣି ।

---

## ସବେ ଆମେ ଏକ ଈଶ୍ୱର ସନ୍ତାନ
## ସାଧ ଜଣେ ହେବ ତେବେ ଅଭିମାନ ।

"ଶୁଣିଲି ଆପଣଙ୍କ ପାଖରେ ଟଙ୍କା ଅଛି । ମୋର ନହାତି ଦରକାର । ଆପଣ କିଛି ଟଙ୍କା ଉଧାର ଦିଅନ୍ତୁ । ମୁଁ ପରେ ସୁବିଧା ଦେଖି ସେ ଟଙ୍କା ଫେରାଇ ଦେବି ।"

ଏଭଳି ଅନୁରୋଧ କରୁଥିବା ବ୍ୟକ୍ତି ଆଉ କେହି ନୁହଁନ୍ତି, ସେ ହେଉଛନ୍ତି ପଣ୍ଡିତ ଗୋପବନ୍ଧୁ ଦାସ । ପ୍ରଚାରକ ଅନନ୍ତ ମିଶ୍ରଙ୍କୁ ସେ ଧାର ମାଗୁଥିଲେ । ଦୁହେଁ ପିଲାଦିନରୁ ବନ୍ଧୁ । ଦେଶ କାମରେ ସହକର୍ମୀ ।

ଗାନ୍ଧିଜୀଙ୍କର ସତ୍ୟାଗ୍ରହ ଏବଂ ଅସହଯୋଗର ବାର୍ତ୍ତା ଗାଆଁ ଗହଳରେ ବୁଲି ବୁଲି ପ୍ରଚାର କରିବାର ଦାୟିତ୍ୱ ଗୋପବନ୍ଧୁ ଅନନ୍ତ ମିଶ୍ରଙ୍କୁ ଦେଇଥିଲେ ।

ଗୋପବନ୍ଧୁ ତ ଆଦୌ ଧାର ମାଗନ୍ତି ନାହିଁ । ହୁଏତ ସେଇମିତି କିଛି ଅସୁବିଧା ପଡ଼ିଛି ତେଣୁ ସିନା ସେ ଉଧାର ମାଗୁଛନ୍ତି । ପ୍ରଚାରକ ଅନନ୍ତ ମିଶ୍ର ଏହା ଭାବି ଟଙ୍କାତକ ଗୋପବନ୍ଧୁଙ୍କ ହାତକୁ ବଢ଼ାଇଦେଲେ ।

ମଜାକଥା ହେଲା । ଗୋପବନ୍ଧୁ ଶୁଣିବାକୁ ପାଇଲେ ଯେ ପାଦରେ ଚାଲି ଚାଲି ଗାଆଁକୁ ଗାଆଁ ଯିବାରେ କଷ୍ଟ ହେଉଛି ଭାବି ବନ୍ଧୁ ଅନନ୍ତ ମିଶ୍ର ଖଣ୍ଡିଏ

ସାଇକେଲ କିଣିବାକୁ କିଛି ଟଙ୍କା ସଞ୍ଚୟ କରିଛନ୍ତି । ଏ ଖବର ଗୋପବନ୍ଧୁ ଜାଣିବା ମାତ୍ରେ ମିଶ୍ରେ ସାଇକେଲ ଖଣ୍ଡି କିଣିବା ଆଗରୁ ଟଙ୍କାତକ ଧାର ମାଗିନେଲେ ।

କାମ ତ ଚାଲିଛି । ଦିନ ପରେ ଦିନ ବି ଚଢ଼ି ଚାଲିଛି । କିନ୍ତୁ ଗୋପବନ୍ଧୁ ଟଙ୍କା ଫେରାଇବାର ନାମଗନ୍ଧ ଧରୁ ନାହାନ୍ତି । ପ୍ରଚାରକଙ୍କର ଏଣେ ସାଇକେଲ ଖଣ୍ଡିଏ କିଣିବାର ଆଶା ଦିନକୁ ଦିନ ବଢ଼ି ଚାଲିଛି ।



ପ୍ରଚାରକ ଅନନ୍ତ ମିଶ୍ର ଭାବିଲେ ହୁଏତ ଗୋପବନ୍ଧୁ ଟଙ୍କା କଥା ଭୁଲି ଯାଇଛନ୍ତି । ତେଣୁ ତାଙ୍କୁ ମନେ ପକାଇ ଦେବାଟା ଉଚିତ୍ ହେବ । ଏହା ଭାବି ସେ ଦିନେ ଗୋପବନ୍ଧୁଙ୍କୁ ଧାର ଦେଇଥିବା ଟଙ୍କା ମାଗି ବସିଲେ ।

ଗୋପବନ୍ଧୁ ଟଙ୍କା ଦେବେ କ'ଣ—ବ୍ରେକ୍ ଠୋକ୍ ଭାବରେ କହିଲେ ଯେ, ସାଇକେଲ କିଣିବା ପାଇଁ ସେ ଟଙ୍କା ଆଦୌ ଦେବେନାହିଁ ।

ପ୍ରଚାରକ ଅନନ୍ତ ମିଶ୍ର ଗୋପବନ୍ଧୁଙ୍କ ଭୁଣ୍ଡରୁ ଏଭଳି କଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । ସେ ପ୍ରଶ୍ନ କଲେ—ତୁମେ ମୋଠାରୁ ଟଙ୍କା ଧାର ନେଲ; କିନ୍ତୁ ମୁଁ ସାଇକେଲ କିଣିବା ପାଇଁ ମାଗିଲାବେଳକୁ ନାହିଁ କରୁଛ ? ଏ କିପରି କଥା ?

ଗୋପବନ୍ଧୁ ପ୍ରଚାରକଙ୍କର ପ୍ରଶ୍ନ ଶୁଣି ଅଳ୍ପ ହସିଲେ । ତାଙ୍କ ପିଠିରେ ହାତମାରି କହିଲେ—ଟଙ୍କା ଯେ ମୁଁ ନେଇନାହିଁ ତାହା ତ କହୁନାହିଁ; କିନ୍ତୁ ସାଇକେଲ କିଣିବା ପାଇଁ ସେ ଟଙ୍କା ଦେଇପାରିବି ନାହିଁ । ସାଇକେଲ ଖଣ୍ଡିଏ ନାହିଁ ବୋଲି ତୁମେ ପାଦରେ ଚାଲି ଚାଲି କାଦୁଅ ପଙ୍କ ଭିତରେ ପଶି ଗାଆଁ ଲୋକଙ୍କ ପାଖକୁ ଯାଇପାରୁଛ । ସେମାନଙ୍କ ନିକଟରେ ଗାନ୍ଧିଜୀଙ୍କର ଅସହଯୋଗର ବାର୍ତ୍ତା ପ୍ରଚାର କରିପାରୁଛ । ଯଦି କାଲି ଖଣ୍ଡିଏ ସାଇକେଲ କିଣିବସିବ; ତେବେ ଯେଉଁ ଗାଆଁକୁ ସାଇକେଲ ଯିବାପାଇଁ ରାସ୍ତା ନାହିଁ, ସେ ଗାଆଁକୁ କ'ଣ ଯାଇ ପାରିବ ? ତାହାହେଲେ ଯେଉଁମାନେ କାଦୁଅ ପଙ୍କ ବଣ ବଲ ଭିତରେ ଘର କରି ଅଛନ୍ତି ସେମାନଙ୍କର ହାଲଚାଲ କିଏ ବୁଝିବ ?

ପ୍ରଚାରକ ଅନନ୍ତ ମିଶ୍ର ଗୋପବନ୍ଧୁଙ୍କର ଅସଲ ଉଦ୍ଦେଶ୍ୟ ବୁଝିପାରିଲେ । ନିଜର ଭୁଲ ପାଇଁ ମନେ ମନେ ଲଜ୍ଜା ପାଇଲେ । ଏତେଦିନ ପରେ ସେ ଜାଣି ପାରିଲେ ଯେ ଲକ୍ଷ ଲକ୍ଷ ଦେଶବାସୀ କାହିଁକି ତାଙ୍କୁ ଦୀନବନ୍ଧୁ ବୋଲି ଡାକନ୍ତି ।

———

## ପୁଣ୍ୟ ଜନ୍ମମାଟି, ପୁଣ୍ୟ ଦେବାଳୟ
## ଉଦ୍ଧରିବା ପାଇଁ କଲେ ତନୁ କ୍ଷୟ ।

ଆଜିକାଲି ମଧ୍ୟ ଖବରକାଗଜ କହିଲେ ଲୋକମାନେ "ସମାଜ"କୁ ବୁଝିଥାନ୍ତି । ଉଣେଇଶିଶହ ଉଣେଇଶି ମସିହା ଅକ୍ଟୋବର ମାସ ୪ ତାରିଖ ଦିନ 'ସମାଜ' ଓଡ଼ିଶାରେ ଜନ୍ମ ନେଲା । ଲୋକଙ୍କୁ ଅକ୍ଷର ଶିଖାଇବା ପାଇଁ ଯିଏ ବନ ବିଦ୍ୟାଳୟ ପ୍ରତିଷ୍ଠା କଲେ ସେହି ମହାପୁରୁଷ ଦେଶ ବିଦେଶ ଖବର ଜାଣିବା ପାଇଁ ପ୍ରତ୍ୟେକ ଓଡ଼ିଆ ହାତରେ 'ସମାଜ' ଧରାଇଦେଲେ । 'ସମାଜ'ର ଜନ୍ମ ଦିନରେ ସେ ଲେଖିଥିଲେ—"ସମାଜର ଭାଷା ଅତି ସରଳ ଓ ସହଜ ହେବ । ଯେ ଖାଲି ଅକ୍ଷର ଚିହ୍ନିଥିବେ, ସେ ପଢ଼ିଲେ ବୁଝିପାରିବେ । ଏପରିକି ଅକ୍ଷର ଚିହ୍ନି ନ ଥିବା ଲୋକେ ସୁଦ୍ଧା ଶୁଣି ବୁଝି ପାରିବେ ।"

'ସମାଜ' ପ୍ରତି ଲୋକମାନଙ୍କର ଆଦର ବଢ଼ି ଚାଲିଲା । କ୍ରମେ କ୍ରମେ ଏହା ସାତ ଦିନରେ ଥରେ ପ୍ରକାଶିତ ନ ହୋଇ ଦୈନିକ ଖବରକାଗଜ ରୂପେ ସେମାନଙ୍କ ନିକଟରେ ପହଞ୍ଚିଲା । 'ସମାଜ' ପ୍ରକାଶନ ପଛରେ ପ୍ରତିଷ୍ଠାତାଙ୍କର ଯେଉଁ ଆଦର୍ଶ ଥିଲା ତାହା ଏବେ ମଧ୍ୟ ସେହିପରି ରହିଛି ।

ଓଡ଼ିଆମାନଙ୍କର ସୁଖ ଦୁଃଖ ସହିତ ନିଜକୁ ଏତେ ନିବିଡ଼ ଭାବରେ ମିଶାଇ ଦେଇଥିଲେ ଯେ, ଶେଷରେ ସେ ଜଣେ ବ୍ୟକ୍ତି ହୋଇ ରହିଲେ ନାହିଁ, ଗୋଟିଏ ଅନୁଷ୍ଠାନରେ ପରିଣତ ହୋଇଗଲେ ।

ଲୋକସେବକ ମଣ୍ଡଳର ସଭ୍ୟ ରୂପେ ଯୋଗଦେବା ପରେ ଦେଶ କାମରେ ଅନବରତ ଲାଗି ରହିବାରୁ ତାଙ୍କର ସ୍ୱାସ୍ଥ୍ୟ ଭଲ ରହିଲା ନାହିଁ । ଲାହୋରଠାରେ ଏକ ସମ୍ମିଳନୀରେ ଯୋଗଦେଇ ଆସିଲା ପରେ ସେ ଅତ୍ୟନ୍ତ ଦୁର୍ବଳ ହୋଇ ପଡ଼ିଲେ । ଯେତେ ଚିକିତ୍ସା କଲେ ସୁଦ୍ଧା ଆଉ ଆରୋଗ୍ୟ ହେବାର ଆଶା ରହିଲା ନାହିଁ ।



ଊଣେଇଶିଶହ ଅଠେଇଶି ମସିହା ଜୁନ୍ ମାସ ସତର ତାରିଖ ଦିନ ଆଜୀବନ ଦେଶସେବୀ ଏହି ଯୁଗପୁରୁଷଙ୍କର ମରଶରୀର ଓଡ଼ିଶା ମାଟିରେ ମିଶିଗଲା ।

——